# ମିନା, ମିନା, ମିନା

ରଚନା :

ନଦୀୟାବିହାରୀ ମହାନ୍ତି (ବଡ଼ଭାଇ)



# ମିନା, ମିନା, ମିନା

ରଚନା :
ଶ୍ରୀ ନଦୀୟାବିହାରୀ ମହାନ୍ତ (ବଡ଼ଭାଇ)

ପ୍ରକାଶକ :
ସହଦେବ ପ୍ରଧାନ
ଫ୍ରେଣ୍ଡସ୍ ପବ୍ଲିଶର୍ସ,
ବିନୋଦବିହାରୀ, କଟକ-୨

ପ୍ରଥମ ପ୍ରକାଶ : ୧୯୯୧

ମୁଦ୍ରଣ :
ସତ୍ୟବ୍ରତ ପ୍ରେସ, କଟକ-୧

ମୂଲ୍ୟ : ୭.୫୦

# ସୂଚୀପତ୍ର

# ମନକଥା

ଓଡ଼ିଶାର ଯେଉଁ ଅଗଣିତ ଶିଶୁ ଓ କିଶୋର ଭାଇଭଉଣୀ ଆକାଶବାଣୀର ଶିଶୁ-କାର୍ଯ୍ୟକ୍ରମ 'ଶିଶୁ ସଂସାର', 'କିଶୋରଚକ୍ର', 'ଚକାଚକା ଭଉଁରୀ' ଶୁଣନ୍ତି ଓ ଶିଳ୍ପୀ ଭାବରେ ସଂଗୀତ କାର୍ଯ୍ୟକ୍ରମରେ ଅଂଶଗ୍ରହଣ କରି ମୋତେ 'ବଡ଼ଭାଇ'ର ସମ୍ମାନ ଦେଇଛନ୍ତି, ସେହିମାନଙ୍କ ହାତକୁ 'ମିନା, ମିନା, ମିନା' ବଢ଼େଇ ଦେଲି ।

—ବଡ଼ଭାଇ

# ଶିଶୁ ସଂଗୀତ

( ୧ )

ମିନା···ମିନା···ମିନା···
ଦୁନିଆରେ ଡରେ ନାହିଁ କାହାକୁ ସେ ମିନା
ହେଲେ ଡରିଯାଏ ଡାକେ ଯେବେ
କିଏ ?
କକମିନା·······। ୦ ।



[ ମିନାର ଡର ]

ଡରି ଡରି ଥରି ଥରି ଆଖିପତା ବୁଜେ ଥରି
ମାଆ କଥା ଶୁଣି ଆଖି ଖୋଲେ ପୁଣି
ହାତରେ ଧରି ପିଉ ପିଉ, ଉଡ଼ିଗଲା କ୍ଷୀର ଗିନା । ୧ ।

॥ ୨ ॥

ଫେର ଯାରେ ଯା ଫେର

ଅନ୍ଧାର ଘୁଡ଼ୁ ଘୁଡ଼ୁ

ଡରନା ତୁ ମିନା ଦେ ପିଇ ଦେ ନା

ଏ-କ-କ ମିନା ଲୁଚଲାଣି ଘିନା

ପୋଡ଼ଯାଏ ଓଠ ତାର ତାତଛି ଯେ କ୍ଷୀର ଗିନା । ୨ ।

ମିନା···ମିନା·· ମିନା ··

( ୨ )

ହସ ବକ ଆସିଛି ମୁଁ

ନାଁ ମୋର ହସଓ୍ୱାଲା

କେତେ କାଉ ହସରେ

ଫୁଟିଛି ମୋ ହସ ଡାଲା । ୦ ।

ହା, ହା, ହା ହେ, ହେ, ହେ

ହିଁ, ହିଁ, ହିଁ ହୁଁ, ହୁଁ, ହୁଁ

ଫେଁ, ଫେଁ, ଫେଁ ହୋ, ହୋ, ହୋ

ଖିଁ, ଖିଁ, ଖିଁ ଖୁଁ, ଖୁଁ, ଖୁଁ

ଉଟକା ଢାଜା ଏ ଚଳ

ଗଲା ବାବୁ ସରିଗଲା । ୧ ।

ଏମିତ ଚଳ ଏ ମିଳଇ ନାହିଁ

ପଇସା ଦେଲେ ବି ନଦଏ କେହି

ଖୋଜି ଖୋଜି ନଜେ ଆଣିଚ ମୁହିଁ

କାଳିଆ ବଳଦ

ଗଲାରେ ଗଲା·· । ୨ ।

|| ୩ ||

କଇଁ କଇଁ କଇଁ,
କାନ୍ଦୁଛ କଆଁ
ହସି ନଅ କଣି
ମାରରେ ଡଆଁ
ଆସ ଆସ ଧାଇଁ
ମୋ ଝୁଇଁ ଝୁଆଁ
ବେଲ ଯାଏ ଗଡ଼ି
ନହୁଅ ଠିଆ



[ ହୃଦଓ୍ୱାଲର ହୃଦତାଲ ]

କୁତୁ କୁତୁ କୁତୁ କୁତୁ
କାଲଆ ବଲଦ ଗଲାରେ ଗଲା । ୩ ।

( ୩ )

ଶୀତ ସକାଳ ବାସୀ ପଖାଳ ଲାଗଇ ବଡ଼ ଥଣ୍ଡା
ଛୁଙ୍କୁଚ କିଏ କାଶୁଚ କିଏ ଖାଇବ ଆସ ଅଣ୍ଡା
ଏ ତ ନାଲ ମୁରୁଗୀ ଅଣ୍ଡା
ଆମ ଦେଶୀ ମୁରୁଗୀ ଅଣ୍ଡା । ୦ ।
ଏକ, ଦୁଇ, ତିନ୍, ଚାରି, ପାଞ୍ଚ, ଛଅ
କିଏ ମାରୁଛ ଦଣ୍ଡ ବୈଇଠି ଟିକିଏ ବାବୁ ରୁହ
ଏଇ ଅଣ୍ଡାରୁ ଗୋଟିଏ ଖାଅ ବନିବ ତାଜା ଭେଣ୍ଡା।
ମିଛ ନୁହଁ ଏ ଖାଣ୍ଟି ସତଟି କହିବ ସବୁ ଅଣ୍ଡା । ୧ ।
ହାଏ, ହାଏ, ହାଏରେ
ଅଲସୁଆ କେ କମ୍ବଳ ତଳେ କଦେ ପଡ଼ିଛୁ ଶୋଇରେ
ହାତ ପତାଇ ନିଅରେ ବେଗେ ଗରମ ତାଜା ଅଣ୍ଡା
ମିଛ ନୁହେଁ ଏ ଖାଣ୍ଟି ସତଟି କହିବ ସବୁ ଅଣ୍ଡା…।୨।
ଖାଇ ଦେଖ ବନିଯିବ ଗାମା ପହ୍ଲମାନ୍
ଚେହେରା ତୁମ ବଦଳିଯିବ ବଢ଼ିବ ଦେଶ ମାନ୍
ଅଣ୍ଡାକୁ ଡର କମ୍ବଳ ଧର ନହୁଅ ବାବୁ ହୁଣ୍ଡା
ଭେଣ୍ଡା ସାଜିଲେ ଡର ମରିବେ ବଇରୀ ଗଣ୍ଡା ଗଣ୍ଡା ।୩।

( ୪ )

ହାମ୍ଭେ ଢିଙ୍କି, ହାମ୍ଭେ ଢିଙ୍କି, ହାମ୍ଭେ ଢିଙ୍କି, ହାମ୍ଭେରେ
ଢପ୍ ଢପ୍ ଢପ୍ ଢପ୍ କି ଗୀତ ସେ ଗାମ୍ଭେରେ । ୦ ।
ପଡ଼େ ଉଠେ ଧାନ କୁଟେ, କୁଟେ କେତେ ଦରବ
ଆଈ ବୁଢ଼ୀ ଢିଙ୍କି ଚଢ଼ି କରେ କେତେ ଗରବ…। ୧ ।

ହାମ୍ପେ ଢିଙ୍କି · ହାମ୍ପ ଢିଙ୍କି
ଦାନା ଦିଏ ଆମ ମୁଖେ
ହସି ଦିଏ ଫୁଟାଇ
ଭୋକିଲା ପେଟର ଦାଉ
ଦିଏ ସେ ତ ତୁଟାଇ । ୨ ।
ହାମ୍ପେ ଢିଙ୍କି, ହାମ୍ପେ ଢିଙ୍କି…
ଦିନ ପରେ ଦିନ ବିତି
କେତେଯୁଗ ହେଲାଣି
ଢିଙ୍କିଶାଳେ ଢିଙ୍କି ଆମ
ଦିନେ ବୁଢ଼ା ହେଲାନି । ୩ ।

( ୫ )

ବୋଇତଆଳୀ ପାଣିକଖାରୁ କାକୁଡ଼ି ହୋଇ ମେଣ୍ଟ
କରିଲେ ଥିର ଏକାଠି ଦିନେ ପଢ଼ିବେ ବସି ପାଠ ।୦।
ଅବଧାନ କେ ହେବରେ
ପାଠ ପଢ଼ାଇ ଦେବରେ
ଛାଡ଼ିଲେ ହୁରି ତିନହେଁ ମିଶି
ପାଖ ପୋଖରୀ ହୁଡ଼ାରେ ବସି
କଂପିଲା ବାଟ ଘାଟ । ୧ ।
ପାଖ ଗଛର ଡାଳରେ
ବୁଢ଼ା ହନୁଟେ ଭାଳେରେ
ପଢ଼ୁଛି ଯୋଗ କରି ମୁଁ ବାଗ
ଛଡ଼ାଇଦେବ ତିନଙ୍କ ରୋଗ
ଦେଖିବ ତାଙ୍କ ନାଟ । ୨ ।

ଗଛ ଉପରୁ ଖସିରେ
କହେ ଅଳପ ହସିରେ
ଶୁଣି ତୁମର ଡାକରା ଧାଇ
ଆସିଛୁ ପାଠ ଦେବ ବତାଇ
ନ ହୁଅ ଛଟପଟ । ୩ ।



[ ଗଛଡାଳରେ ହନୁର ଭାବନା ]

ଦେଖି ହନୁର ରୂପରେ
ଡରେ ଆସିଲା କଂପରେ
ଫଳ ତନହେଁ ମାରଲେ ଡଆଁ
ହନୁ ବଗୃରା ହେଲା ଭଣ୍ଡିଆ
ଭେକେ ଜଳେ ତା ପେଟ । ୪ ।

( ୭ )

ଡାକ୍ ଡୁମା ଡୁମ୍ ଡାକ୍ ଡୁମା ଡୁମ୍ ବାଇଦ ବଜା
ପାକୁଆ ଅଜା ଧରିଛି ଜିଦ୍ଦ ଖାଇବ ଆଜି ଟାଣୁଆ ଖଜା ।୦।
ପାଚିଲା ଦାଢ଼ି, ଥନ୍ତଲ ପେଟ,
ବାଳକେଶରକ ହେଲାଣି ଖୋଟ
ଖଜାର ଲାଗି ମାରେ କୁହାଟ
ଟାଙ୍ଗର ମୁଣ୍ଡ ଟୁଙ୍ଗାର ଅଜା ।୧।



[ ଝାଡ଼ୁ ମୁଠା ଦେଖି ଅଜାର କାନ୍ଦଣା ଛୁଟିଲ ]

ଗୋଜିଆ ଦାନ୍ତ ଯାଇଛି ପଡ଼ି
ସେଥିରେ ବୁଢ଼ା ବଇଛି ଅଡ଼ି
ବୁଲାଇ ତାର ପାକୁଆ ରେଢ଼ି
ଖାଇବ ଖଜା ପାଇବ ମଜା ।୨।
ଆଇବୁଢ଼ୀକି ଧରିଛି ଜର
ଚେତା ବୁଡ଼ଇ ଥରକୁ ଥର
ଅଜା ବୁଢ଼ାର ନାହିଁ ଫିକର
କହୁଛି ବୁଢ଼ୀ ହାକିଦେ ଖଜା ।୩।

ବାଗରେ ଆଣ୍ଠୁ ଉଠିଲା ଟେଇଁ
ଖଣ୍ଡିଆ ଝାଡୁ ହାତରେ ନେଇ
ଅଜାର ପଛେ ପିଠଇ ଧାଇଁ
କୁହାଟି କହେ ଟାଉଆ ମଜା ।୪।
ଆଣ୍ଠୁ ଡରେ ଧାଇଁ ଧାଇଁ
ଅଜା କାନ୍ଦେ କଇଁ କଇ
ଲାଲ ଗଡ଼େ ଲୁହ ଝରେ
ଖଜା କଥା ମନେ ପଡ଼େ
ଝାଡୁମୁଠା କଥା ଭୁଲି ଅଜା ଖଜା ନିଶା ଛାଡ଼େ
ଖାସା ବୁଦ୍ଧି ଖଞ୍ଜି ବୁଢ଼ୀ ବୁଢ଼ାଙ୍କୁ ଦେଲାରେ ସଜା ।୫।
ଢାକ୍ ଡୁମା ଡୁମ୍ ଟାକ୍ ଡୁମା ଡୁମ୍ ବାଇଦ ବଜା
ପାକୁଆ ଅଜା କାନ୍ଦଇ ବସି
ପାକେଇ ଆଣ୍ଠୁ ଦେଇଚ ସଜା ।୬।

( ୬ )

ଏକ, ଦୁଇ, ତିନ୍
ତିନ୍ ଦୁଇ ଏକ !
ସିଲଟ ଖଡ଼ି ହାତରେ ଧରି
ଯାହା କହୁଚ ଲେଖ ।୧।
ଏକରେ ଦୁଇ ତୁ ଦେଇ ମିଶାଇ
ଦେଖିଲୁରେ ତିନି ହେଲା କି ନାହିଁ
ସ୍ଥାକୁ ଶିଶୁ ସାଥୀ ମିଶାଣ କହୁ

ସିଲଟରୁ ଖଡ଼ି ଟେକ୍ । ୧ ।

ତିନ୍‌ରୁ ଦୁଇ ତୁ ନଅରେ କାଢ଼ି
ଏକ୍ ଏକୁଟିଆ ରହିଲା ପଡ଼ି
ସ୍ଲାକୁଇ କହନ୍ତି ଯେ ଫେଡ଼ାଫେଡ଼ି
ସିଲଟରୁ ଖଡ଼ି ଟେକ୍ । ୨ ।

ତିନ୍‌ରେ ଦୁଇକୁ ଦେଲେଟି ଗୁଣି
ଛଅ ସଂଖ୍ୟା ଗୋଟି ଆସିବ ପୁଣି
ଏ ପାଠର ନାମ ଗୁଣନ ଜାଣି
ସିଲଟରୁ ଖଡ଼ି ଟେକ୍ । ୩ ।

ଛଅକୁ ଦୁଇଟର କରିଲେ ଭାଗ
ତିନି ଭାଗ ହୋଇ ଯିବରେ ବେଗ
ସ୍ଲାକୁଇ ହରଣ କହନ୍ତି ସାଙ୍ଗ
ସିଲଟରୁ ଖଡ଼ି ଟେକ୍ । ୪ ।

( ୮ )

ବୁଢ଼ିଆଣୀ ଲୋ ବୁଢ଼ିଆଣୀ
ଜାଲଟା ଢୋର ଦେ' ଟାଣି । ୦ ।

ପେଟରେ ଭରି ଶଗଡ଼େ ସୂତା
ଆଉ କଆଁ ଲୋ କର ତୁ ଚିନ୍ତା
ଗୋଟିକି ଗୋଟି ଝିଅ ତୁ ଧର
ବୁଣିଯା ଜାଲ ଜବର କର
ଗୃହିଁନା କାହିଁ, ବେଳ ତ ନାହିଁ
ଖରା ତ ଆସି ପଡ଼ିଲାଣି । ୧ ।

|| ୧୦ ||

ହଲ୍‌ଇ ପର ଫରର୍ ଫର
ଉଡ଼ଇ ସିନା ଆହାର ଚୋର
ସବୁକାଲର ମଝିରେ ବସି
ଗାଅନା ଗୀତ ମୁରୁକ ହସି
ଆହାର ବିନା ମରବୁ ସିନା
ବେଲ ତ ଆସି ଗଡ଼ଲାଣି । ୨ ।

ସରୁ ସରୁ ତୋ ନହକା ଗୋଡ଼
ନକର ଆଉ ନକର୍ -କଡ଼
ମିଛରେ ଗଉଁ ନକର ଆଉ
ଛାତିଫୁଲ୍ ତୋ ସେତକ ଥାଉ
ଶୋଇଲ୍ ପୁଅ କହନ କାହିଁ
ଘିଗ କି କେବେ ପାଇଲାଣି । ୩ ।

( ୯ )

ଗୁଡ଼ି ଉଡ଼ୁଛିରେ ନୀଲ ଆକାଶରେ ହସି
ସାପୁଆ ଲାଞ୍ଜ ତା ଦୋହଲ ଦୋହଲ
ପବନେ ଯାଉଛି ଘସି । ୦ ।
ଦେଖଇ ସେ ଆକାଶୁ ଚହିଁ
ତଲେ ଆମେ କରୁଛୁ କାହିଁ
କିଏ ସେ ପଢ଼ୁଛି କିଏ ସେ ଲଢ଼ୁଛି,
ଅଲସୁଆ କିଏ ରହିଛି ବସି । ୧ ।

|| ୧୧ ||

ଉପରକୁ ଯାଉଛୁ ଉଠି
ପବନରେ ସୁଅକୁ କାଟି,
କହୁଛି ଆମକୁ ଲାଞ୍ଜ ତା ହଲାଇ,
ଅଳସ ଛାଡ଼ରେ ହୁଅ ସାହସୀ । ୨ ।

ଆହୁରି ସେ କହୁଛୁ ପୁଣି
ଏ କଥାଟି ରଖିଥା ଜାଣି
ମନ କର ଉଚ, ମନ କର ସ୍ୱଚ୍ଛ,
ଦେଶ କାମ କର କମର କଷି । ୩ ।

( ୧୦ )

ସୂରୁଯ ଉଇଁଲେ ହୁଏ ସକାଳ
ସମୟର ପିଲେ ବହୁତ ମୂଲ । ୦ ।

ଘଡ଼ି ଟିକ ଟିକ ଶବ୍ଦ କରି
ଧାଇଁ ଚାଲିଥାଏ ଆଗକୁ ମାଡ଼ି
କହି କହି ବେଳ ଯାଏରେ ଗଡ଼ି
କାଲି କାମ ବେଗେ ସାରରେ ସାରି । ୧ ।

ପଛକୁ ରହିଲେ ଅଳସ ହୋଇ
ଆଗେଇଯିବ ମୁଁ ଥିବଟି ଚାହିଁ
କା'ଲାଗି ଡାକିଲେ ମୁଁ ରହିବ ନାହିଁ
ବାକି କାମ କିଛି ନ କର ଭୁଲ । ୨ ।

ଅଲସୁଆ ପାଇଁ ସଜ ମୋ ଛାଟ
ଆଗୁଆ ବୀରଙ୍କୁ ଦେଖାଏ ବାଟ
ଉଠ ଉଠ ପିଲେ ନ କର ମଠ
ମୋ ସାଥେ ପାଦକୁ ମିଳାଇ ଚାଲ । ୩ ।

( ୧୧ )

ବଉଳ, ଚମ୍ପା, ମଲ୍ଲୀ, ମନ୍ଦାର
କି ହସହସ ସତେ
ଜଗତ ସିନା ଦିଶେ ସୁନ୍ଦର । ୦ ।

ପତର ଶେଯେ ଶୋଇ, ସପନ ଦେଖ ନିତ
ହରଷ ମନେ କେତେ, ଗାଅ ସରସ ଗୀତ
ସୁରଭି, ସୁମନା ଆଗେ
ଶୋଭି ସଉରଭ ଆଧାର । ୧ ।

ନରମ ଅଙ୍ଗେ ତୁମ, ଛୁଇଁଲେ ଖରା ଆସି
ଅଳସ ଟିକି ଆଗୋ, ଦିଅ ଅଳପ ହସି
ସୁରଭି, ସୁମନ ଆଗୋ,
ଅପସରେ ଯେବେ ଅନ୍ଧାର । ୨ ।

ନବ ଆଲୋକ ଯେବେ, ଧରାରେ ପଡ଼େ ଝରି
ନବ ପୁଲକ ପ୍ରାଣେ, ଫୁଲଗୋ ଦିଅ ଭରି
ସୁରଭି, ସୁମନ ଆଗୋ,
ପୁଲକେ ହୃଦ କନ୍ଦର । ୩ ।

( ୧୨ )

ଗୋଟି ଗୋଟି କୋଟି ଫୁଲ ବନେ ଯାଏ ଫୁଟିରେ
ମଧୁର ମହକ ତାର ଦୂରେ ଯାଏ ଛୁଟିରେ । ୦ ।

ବନପକ୍ଷୀ ଧରି ତାନ
ଗାଏ କେତେ ମଧୁଗାନ
ଯୂଇ ଫୁଟେ ଯାଇ ଫୁଟେ
ଫୁଟେ କନିଅର



[ବିଭିନ୍ନ ପ୍ରକାର ଫୁଲ]

ମାଧବୀ, ମାଳତୀ ହସେ
ମଲ୍ଲୀ ମହକେ ସୁବାସେ
କୁଞ୍ଜଲତା ପୋତ ମଥା ଯାଏ କୁଞ୍ଜେ ଲୋଟିରେ । ୧ ।

॥ ୧୪ ॥

ଧୀରସମୀରଣେ ନାଚେ
କାଠଚମ୍ପା ଗଛେ ଗଛେ,
ପାଖୁଡ଼ା ମେଲାଇ ଚାହେଁ
ସେବତୀ ମନ୍ଦାର
ଫୁଲେ ଫୁଲେ ଯାଏ ଭର
ଧରଣୀରାଣୀର ଶିର
ସୂରୁଯ ପୂରୁବ ନଭେ ଧୀରେ ଆସେ ଉଠିରେ । ୨ ।

( ୧୩ )

ତୋଳନା ତୋଳନା ମୋତେ
ଫୁଟିବ ମୁଁ ଟିକ ଫୁଲ
କଅଁଳ ଲତାର କୋଳେ ଯାଉ ବତ ମୋର ବେଳ ।୦

ଥିରଥିର ସମୀରଣେ
ଶିରଶିର ପାଖୁଡ଼ା ମୋ
କରକର ହସି ହସି
ଦୋହଲିବ ଢଳଢଳ । ୧ ।

ଭୁରୁଭୁରୁ ସୁବାସ ମୋ
ଘୂରି ଘୂରି ଯିବ ଦୂରେ
ଗାଇବ ମଧୁର ଗୀତ
ଝର ସାଥେ କଲକଲ । ୨ ।

ଖାଁଡ଼ଖାଡ଼ ଟିକି ପର
ଉଡ଼ି ଉଡ଼ି ପ୍ରଜାପତି
ମୋ ସାଥେ ନାଚବ ଖେଳି
କେତେ ଲୁଚକାଳି ଖେଳ । ୩ ।

ମୋ ଲାଗି ସୁନ୍ଦର ଦିନା
ସୁନ୍ଦର ସବୁଜ ବନ
ଲତାକୋଳୁ ତୋଳ ମୋତେ
କର ନାହିଁ କଲବଲ । ୪ ।

( ୧୪ )

ଆ ଜହ୍ନମାମୁଁ ଆରେ···ଆ–ଆ–ଆ
ତୁ···ଆ–ଆ । ୦ ।

ଟିକି ଟିକି ତାର୍ ସଙ୍ଗେ, ନିତି ଖେଳୁ କେତେରଙ୍ଗେ
ଆଜି ମାମୁଁ ଆମ ସଙ୍ଗେ ଥରେ ଖେଳି ଯା,
ନୀଳ ଆକାଶର କୋଳେ,
କଳା ବାଦଲର ତଳେ
ଉଙ୍କି ମାରୁ ଥରେ ଥରେ ଲୁଚି ଲୁଚି ଗୀହାଁ । ୧ ।

ଚକଚକ ଦେହ ତୋର, ଆକାଶ ରାଇଜେ ଘର
ଗଲେ ଆମେ ଏତେ ଦୂର
ବୁଡ଼ିଯିବ ସାହାରେ ବୁଡ଼ିଯିବ ସାହା
ଆରେ ସରଗର ଶଶୀ, ହସି ହସି ପଡ଼ ଖସି
ମାମୁଁ ଘର କଥା ବସି ଥରେ କହିଯା । ୨ ।

॥ ୧୭ ॥

ଦବୁ ଭଟେ ଦୁଧଭାତ
ପିନ୍ଧାଇବୁ ପାଟ ନେତ
ଆମ କଥା ମାନ ସତ
ମଞ୍ଜେ ଖସି ଆରେ
ଆ ଜହ୍ନମାମୁଁ ଆରେ···ଆ···ଆ···ଆ
ତୁ···ଆ···ଆ···ଆ । ୩ ।

( ୧୫ )

କୁ କ କ-ଶୋଇ ଦେ ମା···କକ ଭୁକଲାଣିଲୋ
କ କ ଭୁକଲାଣି··· । ୦ ।

କକର ମନରେ କକର ମନ
ଯା ଚ୍ଛଲଯା କକର ମନ
କୁନ ବାହାଦନ ଖାଇବୁ ପାନ
ଅନ୍ଧାର ଘୁଡୁଘୁଡ଼ ମାଡ଼ ଆସିଲାଣି··· । ୧ ।

ପେଚ୍ଛରେ ପେଚ୍ଛ ମାଉଁସ ମେଞ୍ଚା
ଲୁହା କରଚୁଲ ନାଆଁରେ ଖେଞ୍ଚା
ଯା ଚ୍ଛଲଯା ପେଚ୍ଛରେ ପେଚ୍ଛ
ଛୋଟମାଲେ ସାଇଁ ସାଇଁ ନଶା ଡାକଲାଣି··· । ୨ ।

ଜୁଲୁଜୁଲଆରେ ଜୁଲୁଜୁଲଆ
ଆଲୁଅ ଜାଲୁଥା ଭଲଭଲଆ
ଜୁଲୁଜୁଲଆରେ ଜୁଲୁଜୁଲଆ
ପାହାଡ଼ କାନ୍ଥିରେ ପରା ଚ୍ଛନ୍ଦ ବୁଡ଼ଲାଣି । ୩ ।

( ୧୭ )

ନୀଳ ଆକାଶରେ ଫୁଟି କୋଟି ତାରା ଫୁଲ
ହାତଠାରି ଡାକେ ନିତି ତୋଳ ମୋତେ ତୋଳ । ୦ ।

ତାରା ଫୁଲ ତୋଳି କିଏ ଯିବରେ
ସାଥି କିଏ ମୋର ହେବ, ହେବରେ
ପକ୍ଷୀରାଜ ଘୋଡ଼ା ଚଢ଼ି
ମୁଣ୍ଡରେ ପଗଡ଼ି ଭିଡ଼ି
ଆକାଶରେ ଉଡ଼ଉଡ଼ି ସରଗେ ଖେଳିବା ଦୋଳି
ହୋଇ ଏକ ମେଳ । ୧ ।

ନ ଡରିବା ଆମେ କଳା ମେଘରେ
ନ ମାନିବା ଝଡ଼ଝଞ୍ଜା ପାଗରେ
ଆମରି ସାହସ ଦେଖି
ସଭିଏଁ ହୋଇବେ ଖୁସି
ଆମେରେ ମୁରୁକି ହସି ତାରାଫୁଲ ତୋଳି ନିତି
ଗୁନ୍ଥିବାରେ ମାଳ । ୨ ।



# ଦେଶବନ୍ଦନା

( ୧ )

ଆମେ ସେଇ ଦେଶର ଶିଶୁ
ଯେ ଦେଶେ ଗଙ୍ଗା ଯମୁନା ବହେ
ଯେ ବୀର ବୀର ପ୍ରସୂ । ୦ ।

ସାଗର ଯାର ଚରଣ ଛୁଏଁ
ଯା ଶିରେ ହିମ ମୁକୁଟ ଶୋହେ !
କଟୀରେ ଯାର ବିନ୍ଧ୍ୟଗିରି
(ଆମେ) ତାହାର କୋଳେ ହସୁ । ୧ ।

ଭରତ ରାଜା ଖେଳିଲା ଯହିଁ
ସାଥିରେ ସିଂହ ଶାବକ ନେଇ
ଯା' ନାମେ ହେଲା ଭାରତଦେଶ
ଆମେ ତାହାର କୋଳେ ହସୁ । ୨ ।

ଜନମି ଯହିଁ ଗୌତମ ଗାନ୍ଧି
ସଭିଙ୍କି ଦେଲେ ପ୍ରେମରେ ବାନ୍ଧି
ସଂସାରେ ସାର ଦେଶଟି ସିଏ
ଆମେ ତାହାର କୋଳେ ହସୁ । ୩ ।

( ୨ )

ବାଜେ ତୂରୀ ବାଜେ ଭେରୀ
ବାଜେ ବୀରବାଜା···
ଜୟ ହିନ୍ଦ୍, ଜୟ ହିନ୍ଦ୍, ତାନ ତୁ ତୋଳଯା···। ୦ ।



ଏ ଦେଶର ଯେତେ ଯହିଁ
ଶିଶୁ ସୈନିକ
ଧାଡ଼ି ଧାଡ଼ି ଚାଲ ମାଡ଼ି
ରେ ବୀର ପାଇକ ।
ଲେଫ୍‌ଟ ରାଇଟ୍, ଲେଫ୍‌ଟ୍ ରାଇଟ୍
ଲାଗେ ବଡ଼ ତାଜା । ୧ ।

|| ୨୦ ||

ଠିକ ପାଦ କରି ଠାଣ
ଠାଣ କରି ମନ
ଦେଶ ଦଶ ଲାଗି ତୋର
ଢାଳି ଦେ ପରାଣ ।
ଲେଫ୍ଟ ରାଇଟ୍, ଲେଫେଟ୍ ରାଇଟ୍
ଲାଗେ ବଡ଼ ଡାକା । ୨ ।
ମରଣକୁ ଡର ନାହିଁରେ
କରନା ତୁ ଭୟ
ପରହିତେ ପାତ ଛାତି
ହୁଅ ତୁ ଅଜେୟ ।
ଲେଫେଟ୍ ରାଇଟ୍, ଲେଫେଟ୍ ରାଇଟ୍
ଲାଗେ ବଡ଼ ଡାକା । ୩ ।

( ୩ )

ଯେତେ ଯହିଁ ଶିଶୁସାଥୀ ଆସ ଆସ ଆସରେ
ମୁଖେ ଭରି ମଧୁଭାଷା ମିଠା ମିଠା ହସରେ । ୦ ।

ଶାନ୍ତିର ସଇନ ଆମେ ଦୂରେ ଠେଲି ଭ୍ରାନ୍ତି ଯେତେ
ଗଢ଼ିବା ନୂଆ ଦୁନିଆ ହସି ଖେଳି ଏ ଜଗତେ ।
ପରାଣ ଉଠିବ ମାତି, ନିତି ନୂଆ ହରଷରେ । ୧ ।

ଆମରି ପରଶେ ଏଇ ଧରା ବୁକୁ ଉଲ୍ଲସିବ
ଠିକ ମନ ତଳେ ଆମ ନୂଆ ଭାବ ବିକଶିବ
ମହକିବ ମହୀ ଆମ ସୁଗୁଣର ସୁବାସରେ । ୨ ।

ସେନେହ ପୀରତି ଢାଳି        ସଭିଙ୍କି କରିବା ଏକ
ଭୁଲି ଗତ ଭେଦ ଭାବ ଭରିବା ସରଗ ସୁଖ
ହସି ଉଠିବ ଏ ଧରା      ଆମ ପଦ ପରଶରେ । ୩ ।

( ୪ )

ହସିବାରେ ଖେଳିବାରେ ଗାଇବାରେ ଗୀତ
କହିବାରେ ଶୁଣିବାରେ ଯେତେକଥା ସତ । ୦ ।

ଅଣ୍ଟାଭିଡ଼ି ଯିବାମାଡ଼ି ଭଲ କାମ ଲାଗି
ମନ୍ଦକାମେ ଧନେହେଲେ ହେବାନାହିଁ ଭାଗୀ
ଉଡ଼ାଇବା ଏ ଜଗତେ ବିଜୟର ନେତ । ୧ ।

ଟିକି ଛାତି କରି ଟାଣ ଉଚ୍ଚେ ଟେକି ଶିର
ଦେଶ ଦଶ ଲାଗି ସଦା ହେବା ଆଗଭର
ଉଡ଼ାଇବା ଏ ଜଗତେ ମୈତ୍ରୀର କେନ୍ଦ୍ର । ୨ ।

ଶାନ୍ତ ଅହିଂସା ମନ୍ତ୍ର ଜଗତେ ପ୍ରଚ୍ଚରୀ
ପରସ୍ପରେ ସ୍ନେହ ପ୍ରୀତି ଦେବା ଆମେ ଭରି
ଉଡ଼ାଇବା ଏ ଜଗତେ ଶାନ୍ତିର କେନ୍ଦ୍ର । ୩ ।

( ୫ )

ଗଙ୍ଗା ଜଳର ମେଘ ଯା ଆକାଶେ
ଯା ମାଟିରେ କୋଟି ତୀର୍ଥ
ଚିର ସୁନ୍ଦର ସେତ । ୦ ।

॥ ୨୨ ॥

ଏ ଭୂଇଁକୁ ଛୁଇଁ ଧନ୍ୟ ଜୀବନ
ତା କୋଳେ ଜନମି ପୂତ ପ୍ରାଣ ମନ
ଧନ, ଜନ, ମନ କର ବିସର୍ଜନ
ରଖ ତାରେ ଶର ମୁକ୍ତ । ୧ ।

କାହ୍ନେଁରେ ତାହାର ଧରମ ବିଭେଦ
ଶରୀରେ ଭରି ଯା କୀରତ ସଉଧ
ସୁରେ ଭରି ଯାର ଶାନ୍ତିର ନାଦ
ମୁକ୍ତ ସେ ଚର ମୁକ୍ତ । ୨ ।

ଚରଣରେ ଯାର ନତ କର ଶିର
ତାଳେରେ ଚେଉର ଜୁଆର ସାଗର
ମୁକୁଟ ସଜାଏ ହିମ ଗିରିବର
ଆମେ ତାର ସୁତା ସୁତ । ୩ ।

( ୭ )

ନୀଳ ଆକାଶ ସବୁଜ ଘାସ
ନୀଳ ସାଗର ହସେ
ସୁନ୍ଦର ଏ ଧରାର ପରେ
କି ଶୋଭା ପରକାଶେ । ୦ ।

ସେହି ଧରାର କୋଳେ
ସାଙ୍ଗ ସାଥିଙ୍କ ମେଳେ
ଆମେରେ ଆସ ଫୁଟାଇ ହସ
ଗାଇବା ତାଳେ ତାଳେ

ସଭିଏଁ ଆମେ ହୋଇଲେ ଏକ
ବଢ଼ିବ ଦେଶ କାତର ଟେକ
ସୁଖ ସରଗ ଭରିବ ସିନା
ଜଗତେ ଦେଶେ ଦେଶେ । ୧ ।

ଦେଶ ବିଦେଶ ଭୁଲି
ସଭିଙ୍କ ସାଥେ ମିଳି
ସବୁରୀ ସେବା ଆମେ କରିବା
ଭେଦ ଦୂରକୁ ଠେଲି

ଏଇ ଧରାର ମଣିଷ ଆମେ
ହୋଇଲେ ଏକ ସବୁର କାମେ
ସୁଖ ସରଗ ଭରିବ ସିନା
ଜଗତେ ଦେଶେ ଦେଶେ । ୨ ।

( ୭ )

ମା ଦଅ ମୋତେ ଜଓ୍ୱାନ୍ ସାଜି
ଲଢ଼ିବ ମୋ ଦେଶ ପାଇଁକି ଆଜି । ୦ ।

ପାଣିରେ ବୁଡ଼ିବ ଆକାଶେ ଉଡ଼ିବ
ଲଢ଼ିବ ଭୂଇଁରେ ପୁଣି
ମୋ ଦେଶ ମାଟିରୁ ପାଣି ପବନରୁ
ଅରୀ ନାଶିବ ଟାଣି
କରି ମୋ ଜୀବନ ବାଜି··· । ୧ ।

॥ ୨୪ ॥

ସତ୍ୟର ପାଇଁ ନ୍ୟାୟର ପାଇଁ
ଜନମ ଭୂଇଁର ପାଇଁ
କର୍ତ୍ତବ୍ୟ ଭାଇଙ୍କ ସାଥିରେ ମାତବ
ଲଢ଼ିବ ଜୀବନ ଦେଇ
ଜୀବ ଗଲେ ଯାଉ ହକି । ୨ ।

ଯା ପାଣି ପବନେ ଗଢ଼ା ମା' ମୋର
ଏଇ ମୋର ଟିକି ଦେହ
ସେଇ ମାଟି ମୋର ଜନମ ମାଟି ଯେ
ଆମେ ତାର ପୁଅ ଝିଅ
ଜିଣିବୁ ତାଲାଗି ଯୁଝି...। ୩ ।

( ୮ )

ତାଳ ବାଜେ ତାଇତାଇ
ଭାରତ ଆମର ଜନମ ଭୂଇଁ
ସରଗ ଆମର ସେଇ...। ୦ ।

ତା କୋଳେ ଜନମି ଆମେ
ଲାଗିବା ତା' ସେବା କାମେ
ତା ଲାଗି ଢାଳିବା ଜୀବନ ଆମେରେ
ହସି ଖେଳି ଗୀତ ଗାଇ । ୧ ।

ଏ ଦେଶର ଫୁଲ ଫଳ
ଆମକୁ ଦେଇଛି ବଳ
ଏ ଦେଶ ମାଟିରେ ସୁନା ଫଳାଏରେ
ଗଙ୍ଗା ଗୋଦାବରୀ ନଈ । ୨ ।

ଆସ ଶିଶୁ ସାଥି ଆସ
ମୁଖେ ଭରି ମିଠା ହସ
ମିଳିମିଶି ସବୁ କାମ କରିବାରେ
ଭେଦଭାବ ଦୂରେ ଥୋଇ । ୩ ।

( ୯ )

ଉଡ଼ାଇ ଦେ ନେତ ରେ ଉଡ଼ାଇ ଦେ ନେତ
ଏ ଦେଶର ଗରବ ସେ ଗଉରବ ସେତ । ୦ ।

ଏଇତ ଶାନ୍ତି ମୈତ୍ରୀ ଆଉ ଅହିଂସାର ଧ୍ୱଜା
ଏ ମାଟିର ପରେ ଯାର ନିତ ହୁଏ ପୂଜା
ମହତ ତା ରଖିବାକୁ ନହେବାରେ ଭୀତ । ୧ ।

ମାନ ତାର ରଖିବାକୁ ଟାଣ କରି ପଣ
ସହୀଦ ସାଜିଲେ କେତେ ପୁରୁଷ ମହାନ୍
ଆମେ ଯହିଁ ଥିଲେ ପରି ସେ ମାଟିର ସୁତ । ୨ ।

ହାତେ ଧରି ସେ ପତାକା ଗାଇ ଜୟଗାନ
ଏ ଦେଶକୁ ଗଢ଼ିବାରେ ଢାଳି ମନପ୍ରାଣ
ବିପଦେ ଆପଦେ ତାର ହୋଇ ଏକଯୁଟ । ୩ ।

( ୧୦ )

ମୋ ଦେଶ ପତାକା କେଡ଼େ ସୁନ୍ଦର
ଉଡ଼ଇ ଆକାଶେ ଫର୍ ଫର । ୦ ।

ଗେରୁଆ ଧଳା ଓ ସବୁଜ ରୂପ
ମଝିରେ ଅଶୋକ ଚକ୍ରର ଛାପ
ଦିଶେ ବଡ଼ ମନୋହର । ୧ ।



ସତ୍ୟ, ଅହିଂସା, ମୈତ୍ରୀର ବାଣୀ
କାନେ କାନେ କହିଯାଏ ସେ ପୁଣି
ନାହିଁ ଭେଦାଭେଦ ଥାର । ୨ ।

ଏ ଦେଶ କୀରତି ଗଉରବ ଗାଥା
ଗାଇ ଗାଇ ଉଚେ ତୋଳିଛି ମଥା
ନାହିଁ ତା କାହାକୁ ଡର । ୩ ।

ସେ ପତାକା ପଦେ ମଥାକୁ ନୁଆଁଇ
ଆସ ମୋ ଦେଶର ଭଉଣୀ ଭାଇ
ଘେନିବା ଆଶୀଷ ତାର । ୪ ।

( ୧୧ )

ଫୁଲ ଫୁଟେ ବାସ ଛୁଟେ ନଦ ଯାଏ ଭାଜି
ମନ ତଳେ ଉଠେ ଜାଗି ନୂଆ ଭାବରାଜି । ୦ ।
ଆସିବ ବୋଲି ସେଦିନ
ନାଚେ ଆମ ଚିତ୍ତ ମନ
ତୋଳି ତ୍ରିରଙ୍ଗ କେତନ
ପାଛୋଟି ଆଣିବା ତାରେ
ନୂଆ ବେଶ ସାଜି । ୧ ।
ହସି ହସି ଆସିବ ସେ ଅଗଷ୍ଟ ପନ୍ଦର
ହରଷେ ଭରିବ କୋଟି ହୃଦୟ କନ୍ଦର
ଗୁନ୍ଥି ଦୀପାବଳୀ ମାଳ
ଗଳେ ତାର ଦେବା ହାର
ତୋଳି ଆବାହନୀ ସୁର
ଗାଇବା ସ୍ୱାଗତ ଗୀତ
ହରଷେ ମଜ୍ଜି । ୨ ।
ଶତ ସହୀଦର ସାକ୍ଷୀ
ଆଖି ଖୋଲିଯିବ ଦେଖି
ସ୍ୱାଧୀନ ଭାରତେ ଏକ
ନବ ଜାଗରଣ ଜାଗି
ଉଠିଛି ଆଜି । ୩ ।

( ୧୨ )

ବାପା ମୋତେ ଡରାଅନା

ବୋଉ ମୋତେ ଡରାନା

ଟିକି ଟାଣ ମନକୁ ମୋ

ଟିକେ ହେଲେ ଥରାନା । ୦।

ଏତେ ବଡ଼ ଦେଶ ଆମ

କେତେ କେତେ କାମ ସତେ

ଧନ ରତ୍ନ ଭରିଅଛି

ଭଲ ଲାଗେ ଦେଖି ମୋତେ

ବୁଲି ବୁଲି ଦେଖିବି ମୁଁ

ମିଛେ ମୋତେ ଭୁଲାନା । ୧ ।

ଚାଚା ନେହେରୁଙ୍କ ପରି

ହେବା ପାଇଁ ବଡ଼ ଧନେ

ବଡ଼ ବଡ଼ ଭଲ କଥା

ଶୁଣାଅ ମୋ କାନେ କାନେ

ଡର ଭୟ ଟିକେ ହେଲେ

ମନେ ମୋର ପୁରାନା । ୨ ।

( ୧୩ )

ବାପୁ ନାମ ଜପ ନାହିଁ

ବାପୁ କାମ କର ରେ,

ଭାରତମାତାର ମୁଖେ

ନିତ ହସ ଭର ରେ । ୦ ।

ବାପୁ ପରି କହ ସତ
ହୁଅ ତୁ ସବୁରି ମିତ
ସାଜି ତୁ ଶାନ୍ତିର ଦୂତ
ଦୁଖି ଦୁଃଖ ହର ରେ । ୧ ।

ବାପୁ ପରା ଗଲେ କହି
ଆମେରେ ସଭିଏଁ ଭାଇ
ଭେଦଭାବ ଦୂରେ ଥୋଇ
ସାଥି ପରି ଚଳ ରେ । ୨ ।

କାଟି ପିନ୍ଧି କୁଟି ଖାଅ
ଅଳସେ ତୁ ନାହିଁ ଶୁଅ
ହୋଇ ହସ ହସ ମୁହିଁ
ସାଜ କର୍ମ ବୀର ରେ···। ୩ ।

( ୧୪ )

କଥାଟିଏ କହୁଁ କଥାଟିଏ
ବୁଢ଼ୀ ଅସୁରୁଣୀ ପରୀରାଇଜର
ମିଛ ଗପ ନୁହେଁ ସତଟିଏ···। ୦ ।

ନୀଳ ଢେଉ ଘେରା
ଦରିୟାର ତୀରେ
ଉଚ୍ଚା ଯେ ଦେଉଳ କୋଣାରକ
ବାର ବରଷର କାରୀଗର ପୁଅ
ଗଢ଼ି ଯା' ରଖିଲା କାତ ଟେକ,

୩୦ ॥

ସେହି ଧର୍ମପଦ ଏ ଜାତି ସଂପଦ
ଯା କୀରତି ଗୀତ ଦେଶ ଗାଏ···। ୧ ।

ଝର ପରବତ ଘେରା ଭୂଇଁ ଯହିଁ
ନଈ ବହେ କଲ କଲ
ତାହାରି କୋଳରେ ଅସାଧ୍ୟ ସାଧିଲା
ଏ ଦେଶର ପୁଅ ବାଜି ବୀର
ସେ ଅମର ଗାଥା···
ସେ ବୀର ବାରତା
ପରାଣେ ପ୍ରେରଣା ଭରିଦଏ । ୨ ।

ଗୋରା ଶାସନର ଆସନ ଟଳିଲା
ଯେ ସିଂହ ଶାବକ ଗରଜନେ
ଜନମ ମାଟିର ମୁକତିର ଲାଗି
ବରିଲେ ଯେ ଫାଶି ପରସନେ
ସେ ବୀର ଉଦ୍ଧାମ ବୀର ଖୁଦିରାମ
ଅମର କୀରତି ଭୁଲି ନୋହେ । ୩ ।

ଯେ ଦେଶ ମାଟିରେ ଭରି ରହିଛି ରେ
ଅମର କୀରତି ଯଶ ଗାଥା
ଆମେ ସେ ମାଟିର ପରଶେ ହରଷେ
ଆଗେଇ ଚାଲିବା ଟେକି ମଥା,
ଲଙ୍ଘିବାରେ ଶତ ଦୁରୁଗମ ପଥ
ଶଙ୍କୁ ଲୁଚିବ ପ୍ରାଣ ଭୟେ । ୪ ।

( ୧୫ )

ଏଇ ସେ ଭାରତ, ବୀର ପ୍ରସବିନୀ ପୂତ ପବିତ୍ର ଭୂଇଁ
କୋଳେ ଯା'ର ଶତ ଭରତ ଖେଳଇ
ହଂସ ଶାବକ ନେଇ । ୦ ।

ଆମେ ସେ ମାଟିର ସନ୍ତାନ
ଆମେ ସେଇ ମା'ଟିର ସମ୍ମାନ···
ଆମେ ସେ ମାଟିର ବୀର ଗୌରବ
ବୈଭବ ଭରା ନିଶାଣ
ଜୀବନ ଆମର ଧନ୍ୟ ଆଜିରେ
ପରଶ ତାହାର ପାଇ··· । ୧ ।

ଡମ, ଡମ, ଡମ ଦୁନ୍ଦୁଭି ବାଜେ
ଦମ, ଦମ, ଦମ, କଦମ ଆବାଜେ
ଦାମ୍ଭିକ ଅରି ଦଳନେ ଆଜିରେ
ତରୁଣ ସେନାନୀ ସାଜେ
ଜାତିର ନିଶାଣ ଉର୍ଦ୍ଧ୍ବେ ତୋଳିଦେ
ଭୟ ନାହିଁ-ଭୟ ନାହିଁ । ୨ ।

ବୀର ଜବାନ୍ —ସାବଧାନ
ଦେଶର ମାନ୍— ସାବଧାନ
ଜାତି ନିଶାଣ—ସାବଧାନ
ଅଗ୍ରେ ଚ଼ଲରେ ସିଂହ ଶାବକ
ରଣ ଦୁନ୍ଦୁଭି ବାଜେ
ଜାତିରେ ନିଶାଣ ଉର୍ଦ୍ଧ୍ବେ ତୋଳିଦେ
ଭୟ ନାହିଁ-ଭୟ ନାହିଁ··· । ୩ ।

|| ୩୨ ||

ଦାମ୍ଭିକ ଅରିଦଳନେ ଆଜିରେ
ତରୁଣ ସେନାନୀ ସାଜେ
ଜାତିର ନିଶାଣ ଊର୍ଦ୍ଧ୍ୱେ ତୋଳଦେ
ଭୟ ନାହିଁ-ଭୟ ନାହିଁ । ୨ ।

ବୀର ଜବାନ୍—ସାବଧାନ
ଦେଶର ମାନ୍—ସାବଧାନ
ଜାତି ନିଶାଣ—ସାବଧାନ
ଅଗ୍ରେ ଚଳରେ ସିଂହ ଶାବକ
ରଣ ଦୁନ୍ଦୁଭି ବାଜେ
ଜାତିର ନିଶାଣ ଊର୍ଦ୍ଧ୍ୱେ ତୋଳଦେ
ଭୟ ନାହିଁ-ଭୟ ନାହିଁ । ୩ ।

( ୧୭ )

ସରିନାହିଁ ସରିନାହିଁ ସଂଗ୍ରାମ ପୁରିନାହିଁ ବାସନା
କହ କାହିଁ କହ କାହିଁ ବିଶ୍ରାମ ମଉନେ ତୁ ବସନା । ୦ ।
ଜାଗିର ଛାତିରେ ବଳ ଭରିଦେ ତୁ ଭରିଦେ
ବାହୁବଳ ଦେଇ ତୋର ଏ ଦେଶକୁ ଗଢ଼ିଦେ
ବଇରୀ ଅରିଗୀ ସାଜି ଏ ମାଟିରୁ ତଡ଼ିଦେ
ଜୟହିନ୍ଦ୍, ଜୟହିନ୍ଦ୍ ରଟୁ ତୋର ରସନା । ୧ ।
ହିମଗିରି ଉଲ୍ଲାସେ ଉଠୁ ଥରି ଉଠୁରେ
ପାରବାର ପୁଲକେ ମଥା ଟେକି ଉଠୁରେ
ଗଙ୍ଗା, ଯମୁନା ଧାରି କୂଳ ଭେଦି ଛୁଟୁରେ
ଜୟହିନ୍ଦ୍ ଜୟହିନ୍ଦ୍ ରଟୁ ତୋର ରସନା । ୨ ।

|| ୩୩ ||

ଜାତୀୟ ପତାକା ଉର୍ଦ୍ଧ୍ୱେ ତୋଳଦେ ତୁ ତୋଳଦେ
ଶହୀଦ ପରଶେ ପୂତ ଧୂଳି ଶିରେ ବୋଳଦେ
ଏ ଦେଶ ଏ ଜାତି ଲାଗି ଲହୁ ଲୁହ ଢାଳଦେ
ଜୟହିନ୍ଦ୍ ଜୟହିନ୍ଦ୍ ରଟୁ ତୋର ରସନା । ୩ ।



# ଶିଶୁ ସଙ୍ଗୀତ

( ୧ )

ଜୟ ଗଣପତ ଦଅହେ ସୁମତି
ଦଅ ଶୁଭବୁଦ୍ଧି ଦଅହେ
ଆଶୀଷ ତୁମର ବରଷି ଜଗତେ
ପାପ ତାପ କର କ୍ଷୟହେ । ୦ ।

ମୃଷିକ ବାହନ ଆହେ ଗଜାନନ
ପାର୍ବତୀ ନନ୍ଦନ ବିଘ୍ନନାଶନ
ହେ ଲମ୍ବୋଦର ଜୟ ହେ···। ୧ ।

ନ କର ହେ ଊଣା ତୁମର କରୁଣା
ନିଅହେ ସୁପଥେ ମୁଁ ଯେ ବାଟବଣା
ତୁମ ପାଦେ ରହୁ ଲୟ ହେ । ୨ ।

ଚାହେଁ ନାହିଁ ମୁହିଁ କିଛି ନିଜ ପାଇଁ
ଯାଉ ମୋ ଜୀବନ ଗଣ ସୁଖଧାୟୀ
ଦଅ ଏହି ବରାଭୟ ହେ । ୩ ।

( ୨ )

କାଳିଆ ଗୋପାଳିଆ
କପାଳିଆ ହିର ରେ
ଯଶୋଦା ମାତାର ହାତୁ
ଖାଏ ସରପୁଳି ରେ । ୦ ।

ଲହୁଣୀ ଚୋରାଇ ଖାଏ
ନାଚ ଲଞ୍ଚ ମାଗୁଥାଏ
ପାଦରେ ନୂପୁର ତାର ବାଜେ ଥିରଥିର ରେ ।୧।



ଶୀରେ ଶୋହେ ଶିଖିଚୂଳ
ନାଚେ କାହ୍ନୁ ଢଳ ଢଳ
ନନ୍ଦଗୋଷ୍ଠ କରେ ନାଟ କେତେ ଭଳିଭଳି ରେ ।୨।

ପୁତନା, ଶକଟା, ବକା
ନାଶିଲା ମୁରଲୀ ଫୁଙ୍କା
କଂସ ମାର ଗୋପ ତାରୀ ନାଚେ ଦଇତାରୀରେ ।୩।

ଶ୍ୟାମଳୀ, ଧବଳୀ ସାଥେ
ନିତି ଧେନୁପଲେ ମାତେ
ବଇଁଶୀ ବଜାଏ ବନେ ବନେ ବନମାଳୀ ରେ ।୪।

( ୩ )

କଲାକାହ୍ନୁରେ ଉଠ ସକାଳ ହେଲା
କମଳ ଆଖି ତୋ ଖୋଲ ଆରେ ବାବୁ
ଶୁକ ପିକ ଡାକ ଦେଲେଣି ପରା । ୦ ।



ଆରେ ନନ୍ଦ ଗୃହ ନ କର ତୁ ମଠ
ଗୋପାଳ ବାଳକ ହେଲେଣି ଠୁଳ
ଶିଙ୍ଗା ଶବଦରେ ଗୋପଦାଣ୍ଡ ପୁରେ
ଶେଯ ଛାଡ଼ ବେଗେ ମୋ ଗଳାମାଳା । ୧ ।

ଆରେ ବନମାଳୀ ମୋ ଜୀବ ଶଙ୍ଖାଳି
ସର ଲବଣୀକି ନଦେବୁ ମୁଖେ
ଅଳ ଲାଗି ତୋର ମନ କି ନବଳେ
ପଲଙ୍କେ ଲୋଟୁଚରେ ଦୁଃଖ ପାଶୋରା । ୨ ।

ସୁଦାମ, ସୁବଳ ତୋ ସଖା ସକଳ
ଧେନୁପଲ ସଙ୍ଗେ ହେଲେଣି ଉଭା
ଶ୍ୟାମଳୀ, ଧବଳୀ ଛାଡ଼ନ୍ତି ହଁବାଳ
ଗୋଷ୍ଠବିହାରୀ ତୁ ନ କର ହେଳା । ୩ ।

( ୪ )

ନନ୍ଦରଜାର ସେ ଗୁଣ୍ଡୁଣୀ ହାତୀ
ଚଳି ଚଳି ଗୋପଦାଣ୍ଡେ ବୁଲୁଥାଇ
ପାଦେ ତା' ନୂପୁର ସୁନ୍ଦର ଅତି । ୦ ।

କଳାକାହ୍ନୁ ନାମଟି ତାର
ଗୋପୀଙ୍କର ଗଳାର ହାର
ସକଳବଣୀରେ ବଡ଼ ଶରଧା ତା'
ଆଦରେ ଖୁଆନ୍ତି ମା' ଯଶୋମତୀ । ୧ ।

ବୃନ୍ଦାବନ ବନରେ ବୁଲି
ନାଚେ କେତେ ରଙ୍ଗେ ସେ ଚଳି
ରଜାଘର ହାତୀ କଳା କହ୍ନାଇ ସେ
ନାହିଁ ତାର ତଳେ ପରାଣେ ଭୀତି । ୨ ।

ନବାରୀ ସେ କେତେ ଅସୁର
ବକା, ଅଘା, ଶକଟାସୁର
କାଳିକି ଦଳିଲା, ଇନ୍ଦ୍ର ମାନ ନେଲା
ହରିଛି ଗୋପର କେତେ ବିପତ୍ତି । ୩ ।

( ୫ )

ଜଗନ୍ନାଥ ହେ ବଡ଼ ଦେଉଳ ଛାଡ଼ି
ବଡ଼ଦାଣ୍ଡେ ଆଜି ରଥେ ବିଜେ କରି
ଭକତଙ୍କ ଦୁଃଖ ନେଉଛ ହରି । ୦ ।



କଳା, ଧଳା ଘୋଡ଼ାରେ ଚଢ଼ି
ଯାଇଥିଲ ଦେଉଳ ଛାଡ଼ି
ତୁମେ ଦୁଇଭାଇ ଭକତର ପାଇଁ
ପାଇକ ସାଜିଲ ପଡ଼ିଲା ହୁରି । ୧ ।

ମାଣିକର ଖାଇଲ ଦହି
ରତ୍ନମୁଦ୍ଦ ବନ୍ଧା ଯେ ଦେଇ
ଗଜପତିଙ୍କର ମାନ ରଖି ପ୍ରଭୁ
କାଞ୍ଚିର ମହତ ଦେଲ ଯେ ସାର । ୨ ।

ସାଥେ ଧରି ବଳିଆ ଭାଇ
ଭଉଣୀ ଯେ ସୁଭଦ୍ରା ମାଈ
ବରଷକେ ଥରେ ବଡ଼ଦାଣ୍ଡେ ବୁଲି
ଏକତା ମନ୍ତ୍ରର ଯାଅ ପ୍ରଚାରି । ୩ ।

( ୭ )

ଜଗତ ସାଇଁ ହେ ଜଗତ ସାଇଁ
ରଥେ ବିଜେ ସାଥେ ଭଉଣୀ ଭାଇ । ୦ ।

ଜଗତ ଯାକର ଭକତ ଠୁଳ
ବଡ଼ଦାଣ୍ଡେ ବାଜେ ମହୁରୀ ଢୋଲ
ଛୋଟ ବଡ଼ ଭେଦ ନାହିଁରେ ନାହିଁ । ୧ ।

ବଡ଼ଦେଉଳର ବଡ଼ ଠାକୁର
ବଡ଼ଦାଣ୍ଡେ ବିଜେ ରଥ ଉପର
ଭକତ ଗୁହାରୀ ଶୁଣିବା ପାଇଁ । ୨ ।

ସେନାପତି ସାଜି କାଞ୍ଚି ଭୂଇଁରେ
ଦେଶଲାଗି ଯୁଝିଥିଲ ଯାଇଁରେ
ଏମିତ ଠାକୁର ଅଛି କାହିଁରେ । ୩ ।

॥ ୪୦ ॥

ଦାସିଆ ନଡ଼ିଆ ବଢ଼ାଇ ହାତ
ଖାଇ ସୁଖ ପାଇଥିଲ୍ ସିଏତ
ରଥେ ବଜେ ଦୁଃଖ ହାରିବା ପାଇଁ । ୪ ।

( ୭ )

କିଏ କହେ ମା' ଦୁର୍ଗା
କିଏ କହେ କାଳୀ
କେତେ ନାମେ ଭଜେ ତୋତେ
କିଏ କେତେ ଭଲ । ୦ ।

ସବୁରି ତୁ ମା' ପର
ନାମ ତୋ ଅନେକ
ଶରଣ ପଶିଲେ ମାଗୋ
ହରୁ ସବୁ ଦୁଃଖ
କାନ ଡେରି ଶୁଣୁ ମା'ଲୋ ଭକତର ଅଳ । ୧ ।

ତୋର ନାମ ଜପି ଜପି
ଯାଉ ମୋର ଦିନ
ସଂକଟ ତାରିଣୀ ଶଙ୍କା
କର ତୁ ହରଣ
ତୋ କରୁଣା ହେଲେ କେଉଁ ଦୁଃଖ ଯିବ ବଳ । ୨ ।



## ଋତୁ ସଙ୍ଗୀତ

( ୧ )

ଖର୍ ଝାଇଁ ଝାଇଁ ମୁଣ୍ଡ ଝାଇଁ ଝାଇଁ
ସାଇଁ ସାଇଁ ବହେ ଝଞ୍ଜା
ଏଇ ଗିରଷମ ବରଷା ଆଣିବ
ହେବ ଏ ଧରଣୀ ଭିଜା । ୦ ।

ଜଳପୋଡ଼ ଯାଏ ଗଛଲତା ଯେତେ
ଶୁଖିଯାଏ ନଈ ନାଳ
ସେଇ ନଈନାଳ ଜଳ ଆକାଶରୁ
ଢାଳବ ବରଷା ଧାର
କେଶର ମାଣବ ଗଜା । ୧ ।

ଖର୍ ପାଇ ଆମ୍ବ ପଣସ ପାଚବ
ପାଚବ ଖଜୁରୀ କୋଳ
ସେ ପାଚଲ୍ ଫଳ ଖାଇ ଶିଶୁସାଥି
ନାଚବେ ବଜାଇ ତାଳ
ଭୁଲି ଗିରଷମ ସଜା । ୨ ।

ଦୁଃଖ ପରେ ସୁଖ ଓଜାଡ଼ି ଦେବଟି
ଏଇ ବଇଶାଖି ଖରା
ଖରା ନଥିଲେ କି ବରଷନ୍ତା ମେଘ
ହରଷନ୍ତା ଏଇ ଧରା
ନାଚନ୍ତା କି ବେଙ୍ଗ ରଜା । ୩ ।

( ୭ )

ବରଷା ଧାରା ଝରି ଯାଏରେ
ବାଆ ବତାସୀ ଖରେ ବହେରେ । ୦ ।



କଳା ମେଘର-କୋଳେ
ବିଜୁଳି ଯାଏ ଖେଳି
ଭରା ନଈ ପୋଖରୀ
ପଡ଼େ ସିନା ଉଛୁଳି
ନାଉରୀ ଥିଲି ନାହା ବାହେରେ । ୧ ।

ସବୁଜ ଦୁବ ଘାସେ
ଧରଣୀ ରାଣୀ ହସେ
ଗହଳ ଗଛଲତା
ଭରେ ଫୁଲ ସୁବାସେ
ସୁନ୍ଦର ଧରା ଶିର ଶୋହେରେ । ୨ ।
ସବୁଜ ଧାନକେରୀ
କ୍ଷେତରେ ଯାଏ ଭର
ଜଗତ ଜନମନ
ହରଷେ ଉଠେ ପୁରୀ
ଚଷା ବାପୁଡ଼ା
ଗୀତ ଗାଏ ରେ । ୩ ।

( ୩ )

ଝର ଝର ବରଷା
ଝରିଲାରେ ଝରିଲା
ଗ୍ରହୁଁ ଗ୍ରହୁଁ ନଈନାଳ ଖାଲବାଲ ପୁରିଲା । ୦ ।
ବିଜୁଳି ନାରୀ କି ରଙ୍ଗେ
କଳା ବଉଦର ସଙ୍ଗେ
ନାଚି ଉଠିଲା କି ଢଙ୍ଗେ
ଝକଝକ ଆଲୋକ ଝରିଲା । ୧ ।
ପବନ ଛୁଟିଲା ସାଇଁ ସାଇଁ
ତୋଫାନ ଆସିଲା ଧାଇଁ ଧାଇଁ
ଯାହାକୁ ଛୁଇଁଲା, ତାକୁ ଉଡ଼ାଇଲା
ନଈ ଧାରେ ପାଣି ଭରିଲା । ୨ ।

|| ୪୪ ||

ଚଷା ଭାଇ ଗୀତ ଗାଏ
            କାଉରୀଆ ନାଆ ବାହେ
ଧାନ କେରୀ କେରୀ
            ଭରେ ଧରା ଶିର
ଫୁଲେ ଫୁଲେ ବନ ଭରିଲା । ୩ ।

( ୪ )

ଟପ୍ ଟପ୍ ଟପ୍ ଟପ୍ ଥିର ମେଘ ବରଷେ
ଖପ୍ ଖପ୍ ବେଙ୍ଗରାଣୀ ନାଚେ ଧୀରେ ହରଷେ । ୦ ।
  ସାରୁ ବୁଦାମୂଳେ ବସି ବେଙ୍ଗ ରଜା ଦିଏ ହସି
  ଝପ୍ ଝପ୍ ବିଜୁଳି ତା ଟିକି ମନ ତରଷେ । ୧ ।
ବେଙ୍ଗ ରଜା ଗାଏ ଗୀତ ଝାଡ଼ି ଗଲା ଉଠ ଉଠ
ଦୂରେ ଘଡ଼ଘଡ଼ି ବାଜା ଇନ୍ଦ୍ର ରଜା ପରଶେ । ୨ ।
  ଝର ଝର ଝାଇଁ ଝାଇଁ, ବାଆ ବହେ ସାଇଁ ସାଇଁ
  ଛୋଟମାନେ ଟପଟପ ମନ ପ୍ରାଣ ଉଲ୍ଲସେ । ୩ ।
ଝିଡ଼ି ପୋକ ବୁଲେ ଉଡ଼ି ସରୁ ଡେଣା ଝାଡ଼ି ଝାଡ଼ି
ଟାକୁ ଟାକୁ ବେଙ୍ଗରଜା ବଉଁଶ ତା ବିନାଶେ । ୪ ।

( ୩ )

ବରଷା ପରେ ଶରତ ଆସେ
            ଆକାଶ ନିରମଳ···
ଆକାଶେ ହସେ ଶରଦ ଶଶୀ
            ଆହା କି ମନୋହର··· । ୦ ।

ପସର୍‌ ମେଲି ଦଶର୍‌ ଆସେ
ସବୁରୀ ମନ ପ୍ରାଣ ଉଲ୍ଲସେ
ଦେବୀ ପୂଜାର ମେଲଣ ବସେ
ଛୁଟେ ଆନନ୍ଦ ଧାର । ୧ ।

କାଶତଣ୍ଡୀର ହସରେ ମହୀ
ନଦୀ ପଠା ଯେ ପୁଲ୍‌ ଉଠଇ
ବଢ଼ି ଝଡ଼ ତ ଯାଏ ଉଭେଇ
ସରସ ପଲ୍ଲୀ ପୁର । ୨ ।

ବନ୍ଧାଇ ଚ୍ରନ୍ଦ ହରଷ ଚନ୍ତ
ପୁଚ ଖେଳର ମଉଜ ଗୀତ,
ଗାଆନ୍ତି ମିଶି ସହ୍ର ସଂଗାତ,
ତୋଳି ଆନନ୍ଦେ ସୁର । ୩ ।

( ୭ )

କାକର ଝରଇ ଝୁପୁ ଝୁପୁ
ସବୁଜ ଘାସରେ ଟୁପୁ ଟୁପୁ
ଶୀତଳ ପବନ ପରଶ ଲାଗେରେ
ମନ ଖୋଲି ଗୀତ ଗା···ଗାରେ···
ଗା-ଗା···ଅଗିଜାଳ ଗୀତ ଗା···। ୦ ।

କୁହୁଡ଼ି ଘେରଇ ବଣ ବୁଦା ମାଳେ
ବାଟ ଘାଟ ନାହିଁ ଦିଶେରେ···
ହାଡ଼ ଭଙ୍ଗା କାଡ଼ ମାଡ ଆସେ କାହିଁ
ଶୀତଋତୁ, ଶୀତ ମାସେରେ

॥ ୪୭ ॥

ନିଆଁ ର ଉମେହ୍ନି  ଜାଳଦେ ଧାଇରେ
ମନ ଖୋଲି ଗୀତ ଗାରେ··ଗା··
ଅଗି ଜାଳ ଗୀତ··ଗାରେ··ଗା··ଗା । ୧ ।



କଅଁଳ ବଉଳ ଝାଉଁଳ ପଡ଼ଇ
ଶିଶିର ପରଶ ପାଇଲେ
ଧନୀ ଶେଯ ତଳେ ଦୀନ ଗଛ ମୂଳେ
ଶୀତ ଦାଉ ସହୁଥାଇରେ··
ନିଆଁ ର ଉମେହ୍ନି ଜାଳଦେ ଧାଇରେ
ମନଖୋଲି ଗୀତ ଗାରେ··ଗା
ଅଗି ଜାଳ ଗୀତ ଗା··ଗାରେ··ଗା–ଗା ।୨।

( ୭ )

ଅଗି ଜଳିଲା ଶୀତ ଟଳିଲା ହେମକାକର ଗଲା
ବଉଳ ହେଲା ବାସ ଛୁଟିଲା ବସନ୍ତ ଉଦୟ ହେଲା । ୦ ।

ଧରଣୀ ରାଣୀ ଉଠଇ ହସି
କୋଇଲି ଗାଏ ଗଛରେ ବସି
ମଳୟ ବାଆ ଦିଏ ପରଶି ସୁବାସ ମନ ଭୁଲା । ୧ ।

ଗାଁ ଦାଣ୍ଡରେ ଉଠଇ ବାଜି
ଶଙ୍ଖ ମହୁରୀ ଢୋଲକ ରାଜି
ଦୋଳ ଗୋବିନ୍ଦ ଦୋଳରେ ସାଜି
ଲଗାଏ ଆଜି ଲୀଳା । ୨ ।

ଆସରେ ଆସ ହାତରେ ଧର
ରଙ୍ଗ ଅବିର ଭଳକି ଭଳ
ଖେଳିବା ହୋଲି ସଭିଏଁ ମିଳି ଭୁଲିବା ବୁଢ଼ାପିଲା । ୩

( ୮ )

ଶିର ଶିର ମଳୟ ଥିର ଥିର ବହିଲା
କର କର ହସି ହସି ଋତୁରାଜ ଅଇଲା । ୦ ।

ନୂଆ ନୂଆ ପତର କୁଆଁ ମେଲି ଗହ୍ଳେରେ
ଛପି ଛପି କାକର
ଫୁଲ ରଥେ ଧାଏଁ ରେ...
ଆମ୍ବ ଗଛେ କୋଇଲି କୁହୁ ଗୀତ ଗାଇଲା । ୧ ।

ଫୁଲେ ଫୁଲେ ଧରଣୀ
ଫୁଲ ଉଠେ ହରଷେ
ଟୋପା ଟୋପା କାକର
ଶୀତ ବାଆ ପରଶେ
ଶିର ହବା ଧରା ଏବେ ନୂଆ ଶିର ପାଇଲା । ୨ ।

( ୯ )

ଥୁରୁ ଥୁରୁ ଶୀତ ଗଲା ପଳାଇ
ଆସିଲା ବସନ୍ତ ବାଆ···
ସୁଲୁ ସୁଲୁ ବହେ ଥିର ପବନ
କେଡ଼େ ମଜା ଲାଗେ ଆହା···।୦।

ଗଛରେ ବଉଳ ଗଲାଣି ପୁରି
କୋଇଲର କୁହୁ ମଧୁର ସ୍ୱରି
ମଳୟ ଫୁଲର ସୁବାସ ଧରି
ଘୂରି ବୁଲେ ଗାଁ···ଗାଁ ।୧।

ବସନ୍ତ ପଞ୍ଚମୀ ଆସିଲା ହସି
ପୂଜା ମଉଛବେ ସଭିଁଏ ଖୁସି
ମା ସରସ୍ୱତୀ ହଂସରେ ବସି
ହେଲେରେ ଆମର ସାହା ।୨।

ଆଉ କେତେ ଦିନେ ଆସିବ ଦୋଳ
ସାଙ୍ଗ ସାଥି ଯେତେ ହେବାରେ ମେଳ
ଖେଳିବାରେ ରଙ୍ଗ ଅବିର ଖେଳ
ନାଚିବା-ତା-ଥେଇ ତା ।୩।

